# କାଗଜ ଭଙ୍ଗାର ମଜା



ସୃଜନିକା

# ବ୍ୟବହାର ପାଇଁ ସୂଚନା....

କାଗଜ ଭଙ୍ଗାର ମଜା ବହିଟି ସବୁ ବୟସର ଲୋକଙ୍କର କାମରେ ଆସି ପାରିବା ଭଳି ଏକ ସାଧନ ସାମଗ୍ରୀ।

- ପିଲାମାନେ ଏଥିରୁ ସିଧାସଳଖ ମଜା ପାଇପାରିବେ।
- ଶିକ୍ଷକ/ଶିକ୍ଷୟିତ୍ରୀମାନେ ପିଲାଙ୍କ ସହ କାମ କରିବାର ଏକ ମାଧ୍ୟମ ଭାବରେ ଏହାକୁ ବ୍ୟବହାର କରିପାରିବେ।
- ବାପା ମା' ବା ବଡ ଭାଇଭଉଣୀମାନେ ପିଲାଙ୍କ ସହିତ ମିଶି କରି କାଗଜ ଭଙ୍ଗା ଭଳି କିଛି କାମ କରିଲେ ପରିବାର ଭିତରେ ସମ୍ପର୍କ ନିବିଡ ହୋଇପାରିବ।
- ଶିକ୍ଷା ଓ ବିଜ୍ଞାନ କର୍ମୀମାନେ ଅଜଣା ଜାଗାରେ ପରିଚିତି ଆଣିବା ପାଇଁ ଏଥିରୁ ନିଜର କାମ ଆରମ୍ଭ କରିପାରିବେ। ଏହାକୁ ଏକ ଆନ୍ଦୋଳନର ରୂପ ଦେଇ ନିଜେ କରି ଶିଖିବା ଆନ୍ଦୋଳନରେ ଏହାକୁ ଏକ ହତିଆର କରିପାରିବେ।

କେବଳ ପଢିଦେଲେ ବହିଟିରୁ ମଜା ମିଳିବନାହିଁ। ଆକୃତିଗୁଡିକ ନିଜେ କରିବା ଦରକାର। କାଗଜ ଖଣ୍ଡିଏ ଧରି ଭାଙ୍ଗିବାକୁ ପଡିବ ଓ ଅନ୍ୟମାନଙ୍କୁ କରାଇବାକୁ ହେବ। ପିଲାମାନଙ୍କ ସହିତ ସମ୍ପର୍କକୁ ନିବିଡ କରିବା ପାଇଁ ବାପା ମା' ବା ବଡ ଭାଇ ଭଉଣୀମାନେ ଏହି କାମରେ ହାତ ଦେଇପାରିବେ।

# କାଗଜ ଭଙ୍ଗାର ମଜା

ବିମଳ ଦାସ
ପୁଷ୍ପଶ୍ରୀ ପଟ୍ଟନାୟକ

ସୃଜନିକା
ଜାଗମରା, ଖଣ୍ଡଗିରି,
ଭୁବନେଶ୍ୱର - ୭୫୧ ୦୩୦
ଫୋନ ୪୭୦୬୬୪

# କାଗଜ ଭଙ୍ଗାର ମଜା

ସଂକଳନ
ବିମଳ ଦାସ
ପୁଷ୍ପଶ୍ରୀ ପଟ୍ଟନାୟକ

ଚିତ୍ର
ବ୍ରଜକିଶୋର ଜେନା
ପୁଷ୍ପଶ୍ରୀ ପଟ୍ଟନାୟକ

ପ୍ରକାଶକ
ସୃଜନିକା
ଜାଗମରା, ଖଣ୍ଡଗିରି
ଭୁବନେଶ୍ୱର ୭୫୧ ୦୩୦

ଅକ୍ଷର ଓ ଅଙ୍ଗସଜା
ଲିପିଶ୍ରୀ କମ୍ୟୁନିକେସନସ୍
ଜାଗମରା, ଖଣ୍ଡଗିରି
ଭୁବନେଶ୍ୱର ୭୫୧୦୩୦

ମୁଦ୍ରଣ
ଶୋଭନ
୧୦୬, ଆଚାର୍ଯ୍ୟ ବିହାର
ଭୁବନେଶ୍ୱର

ପ୍ରଥମ ପ୍ରକାଶ: ଫେବୃଆରୀ ୧୯୯୭

ମୂଲ୍ୟ ୧୫.୦୦

# Fun with Paper Folding

Compilation
Bimal Das
Puspashree Pattnaik

Illustration
Brajakishore Jena
Puspashree Pattnaik

Publisher
SRUJANIKA
Jagamara, Khandagiri
Bhubaneswar 751 030

DTP & lay out
Lipishree Communications
Jagamara, Khandagiri
Bhubaneswar 751 030

Printing
Shovan
106, Acharya Bihar
Bhubaneswar

First Edition: February, 1997

Price 15.00

# ସୂଚୀପତ୍ର



## ଆକୃତି

# ମୁଖବନ୍ଧ

ମଣିଷର ମନ ଅନେକ କଳ୍ପନାରେ ଭରା । ସେଥିରୁ କିଛିକୁ କାମରେ ରୂପ ଦେଇ ପାରୁଥିବାରୁ ସେ ଆଜି ଏତେ ଆଗେଇ ପାରିଛି । କିନ୍ତୁ ରୂପ ନଦେଇ ପାରିଲେ କଳ୍ପନାର କିଛି ମୂଲ୍ୟ ରହେନାହିଁ । ମନର କଥାକୁ କାମରେ ଜଣାଇ ପାରିଥିବା ମଣିଷଙ୍କୁ ଆମେ ବିଜ୍ଞାନୀ, କବି, ଶିଳ୍ପୀ ଆଦି ଭାବରେ ଜାଣୁଛେ । ତେବେ କଳ୍ପନାକୁ ରୂପ ଦେବା ପାଇଁ ଦରକାର କିଛି ମାଧ୍ୟମ ଓ ଅଭ୍ୟାସ ବା ସାଧନା । ସରଳ ଜିନିଷକୁ ମାଧ୍ୟମ କରି ମନ କଥାକୁ ଜଣାଇବାର ଅଭ୍ୟାସ ଆରମ୍ଭ ହୋଇପାରିବ । ପିଲା ଦିନରୁ ମୂଳଦୁଆ ପଡିଲେ ବୟସ୍କ ଜୀବନରେ ତାହା ଟାଣୁଆ ହୋଇପାରିବ ।

ମନର ଚିନ୍ତାକୁ ହାତର କାମ ରୂପ ଦେବା ପାଇଁ ସାଧାରଣ କାଗଜ ମଧ୍ୟ ଗୋଟିଏ ମାଧ୍ୟମ ହୋଇପାରିବ । ଖଣ୍ଡିଏ କାଗଜକୁ ମୋଡି, ଭାଙ୍ଗି ସେଥିରେ ଡଙ୍ଗା, ଫୁଲ ବା ପ୍ରଜାପତିଟିଏ ତିଆରି କରିବା ଖୁବ୍ ମଜାର କଥା । ଏଭଳି ମଜା ଖେଳ ଭିତରେ ଯେ ଗୋଟିଏ ବଡ କଥାର ମଞ୍ଜି ଗଜୁରୁଛି ତାହା ଆଜିର ଅଧିକାଂଶ ବୟସ୍କ ବୁଝି ପାରନ୍ତିନାହିଁ । ପିଲାମାନଙ୍କୁ ଛୁଉଁଥିବା କାମଗୁଡିକ ତା'ର କଳ୍ପନା ଓ କାମର ଶକ୍ତିକୁ ବଢାଏ ଏବଂ ବିଜ୍ଞାନ ଧାରାରେ ମନକୁ ପକାଏ । ସୃଜନିକାର କାମ ସବୁର ଯୋଜନା ହୁଏ ଏହି ଲକ୍ଷ୍ୟରେ । ଏହି ବହିଟି ସେଥିରୁ ଗୋଟିଏ । କିଛି ବର୍ଷ ତଳେ ଆମେ *ବିଜ୍ଞାନ ତରଙ୍ଗ* ପତ୍ରିକାରେ କାଗଜ ଭଙ୍ଗା ବା ଓରିଗାମୀ ଆଦିର କିଛି ନମୂନା ଦେଉଥିଲୁ । ସେଥିପାଇଁ ପିଲା ବଡ ସମସ୍ତେ ବେଶ୍ ଆଗ୍ରହ ଦେଖାଇଥିଲେ । ଆମ ପାଇଁ ମଧ୍ୟ ଏହା ଗୋଟିଏ ବଡ କାମ ହୋଇଗଲା । ଅନୁଭୂତିରୁ କିଛି ସହଜ, ସରଳ ନମୂନାକୁ ଏକାଠି କରି ଏବେ ଏହି ବହି ଆକାରରେ ପ୍ରକାଶ କରୁଛୁ । ଏଥିରେ ଦିଆ ଯାଇଥିବା କାମଗୁଡିକ ଛୋଟ ପିଲାମାନେ ମଧ୍ୟ କରିପାରିବେ । ତେବେ ଜଣେ ବୟସ୍କ ତାଙ୍କ ସାଥି ଓ ସହାୟକ ହେଲେ କାମଟିର ମୂଲ୍ୟ ବେଶ୍ ଅଧିକ ହୋଇପାରିବ ।

ଓରିଗାମୀର ନମୂନାଗୁଡିକ ଦେଖିଲେ ବେଶ୍ ସହଜ ଲାଗେ । କିନ୍ତୁ ନିଜ ହାତରେ ନକଲା ଯାଏଁ କେହି ତା'ର ମଜା ପାଇ ପାରିବନାହିଁ କି ଅସୁବିଧା ଜାଣିବ ନାହିଁ । ତେଣୁ ଆମେ ଆଶା କରୁଛୁ ଯେ ପ୍ରତ୍ୟେକ ସାଥି ଏହାର ପ୍ରତିଟି ଜିନିଷ ନିଜେ କରିବା ପାଇଁ ଚେଷ୍ଟା କରିବେ । ମଜା ପାଇବେ ଓ ଅସୁବିଧାଗୁଡିକୁ ସୁଧାରିବାର ବାଟ କାଢିବେ । ନିଜେ କାଗଜ ଭଙ୍ଗାର ମଜା ଶିଖିଲାପରେ ତାହା ଅନ୍ୟମାନଙ୍କୁ ଚଖାଇବା ପାଇଁ ବାହାରି ପଡିବେ । ସମସ୍ତେ ମିଶି ବେଶି ବେଶି ନମୂନା ଖୋଜିବାରେ ଲାଗିବେ ଓ ନୂଆ ନୂଆ ଆକୃତି ଗଢିବାର ଚିନ୍ତା କରିବେ । ଶେଷକୁ ନୂଆ ଧରଣର କାମ କରିବା ତାଙ୍କର ଅଭ୍ୟାସରେ ପଡିଯିବ ।

ଏହି ବହି ଓ କାମ ବିଷୟରେ ମତାମତ ଜଣାଇବା ପାଇଁ ଆମେ ଅନୁରୋଧ କରୁଛୁ । ତାକୁ ନେଇ ଆମେ ଆମର ଆଗାମୀ ପ୍ରକାଶନଗୁଡିକୁ ରୂପ ଦେବୁ । ଯଥେଷ୍ଟ ଆଗ୍ରହ ଆସିଲେ ଆମେ ଓରିଗାମୀ ବିଷୟରେ ଅଧିକ ବହି ମଧ୍ୟ ପ୍ରକାଶ କରିବୁ ।

ମାର୍ଚ୍ଚ, ୧୯୯୭ ସୃଜନିକା ପରିବାର

# କାଗଜ ଭଙ୍ଗାର ମଜା - ଓରିଗାମୀ

ପିଲାଟିଏ ପ୍ରଥମେ କାଗଜ ଖଣ୍ଡିଏ ନେଇ ଖେଳିବାକୁ ଆରମ୍ଭ କରେ। ସଫା, ସାଦା କାଗଜ ଖଣ୍ଡିଏ ପାଇଗଲେ ଆମେ ମଧ୍ୟ କେତେ ଖୁସି ହୋଇଯାଏ ! ହାତ ଖୁଜୁବୁଜୁ ହୁଏ କିଛି କରିବା ପାଇଁ। ଚିତ୍ରକରଟିଏ ସୁନ୍ଦର ଚିତ୍ରଟିଏ ଆଙ୍କିଦିଏ। କବି ବା ଲେଖକ ତା'ର ମନର ଭାବକୁ ଭାଷାରେ ଲେଖେ। ଯାଦୁକର କିଛି ଯାଦୁ ଦେଖାଇ ଥାଏ। କାଗଜକୁ ନେଇ ସମସ୍ତେ କିଛି ନା କିଛି ନୂଆ ସୃଷ୍ଟି କରିଥା'ନ୍ତି। ଜାପାନ ଦେଶରେ କାଗଜର ଘର ବି ତିଆରି ହୁଏ।

ଚୀନ୍ ଦେଶରେ କାଗଜ ତିଆରି ଆରମ୍ଭ ହୋଇଥିଲା ଯୀଶୁଖ୍ରୀଷ୍ଟଙ୍କ ଜନ୍ମର ଆଗରୁ। ତେଣୁ ମନେ କରାଯାଏ ଯେ, କାଗଜ ଭଙ୍ଗାର ଆରମ୍ଭ ମଧ୍ୟ ସେହିଠାରେ ଏବଂ ବୋଧହୁଏ ସେହି ସମୟରେ ହୋଇଥିଲା। କାଗଜ ତିଆରି ହେବା ଆଗରୁ ଭାଙ୍ଗ ପଡିପାରିଲା ଭଳି କିଛି ଜିନିଷ ନଥିଲା। ପାପିରସ୍ ବା ପାର୍ଚ୍ଚମେଣ୍ଟରେ ଭାଙ୍ଗ ପକାଇଲା ବେଳକୁ ତାହା ଫାଟି ଯାଉଥିଲା। କନା ଭାଙ୍ଗର ଦାଗକୁ ଧରି ରଖି ପାରୁନଥିଲା। କିନ୍ତୁ କାଗଜ ଏସବୁ ଅସୁବିଧାକୁ ଦୂର କରିପାରିଲା। ଅନେକ ଦିନ ପର୍ଯ୍ୟନ୍ତ ଏହି କାଗଜ ଭଙ୍ଗାର କଳା ବେଶୀ ବ୍ୟାପକ ହୋଇନଥିଲା। ଚୀନ୍ ଦେଶର ଶାସକମାନେ ୬୧୦ ଖ୍ରୀଷ୍ଟାବ୍ଦ ବେଳକୁ କୋରିଆ ଓ ତା'ପରେ ଜାପାନ ଅଧିକାର କଲେ ଓ ସେସବୁ ଦେଶରେ କାଗଜ ଭଙ୍ଗା ପହଞ୍ଚିଗଲା। ପ୍ରାୟ ୧୧୫୦ ମସିହା ବେଳକୁ ଏହା ଏସିଆ, ମଧ୍ୟପ୍ରାଚ୍ୟ ଦେଇ ୟୁରୋପରେ ପହଞ୍ଚିଥିଲା। ଚୀନ୍‌ରେ ଆରମ୍ଭ ହୋଇଥିଲେ ମଧ୍ୟ ଜାପାନରେ ହିଁ ଏହା ବେଶି ଆଗେଇ ପାରିଛି ଓ ତା'ର ଜାପାନୀ ନାମ *ଓରିଗାମୀ* ଭାବରେ ବେଶି ଜଣାଶୁଣା ହୋଇଛି।

ଓରିଗାମୀ ଜରିଆରେ କିଛି ଆକୃତି ତିଆରି କରିବାର ଧାରା ପ୍ରାୟ ହଜାର ବର୍ଷ ତଳେ ଜାପାନ ଦେଶରେ ହିଁ ତିଆରି ହୋଇଥିଲା। ସେ ସମୟରେ ଏହି କଳା ସେଠାରେ ବେଶ୍ ଆଗୁଆ ଥିଲା। ପୂଜାପରବରେ ଏହାର ବ୍ୟବହାର ଜରୁରି ଥିଲା। ଦ୍ୱାଦଶ ଶତାବ୍ଦୀ ବେଳକୁ ଏହା ଏକ ନିତିଦିନିଆ ସାମାଜିକ ରୂପ ନେଲା। ଘରେ ଫୁଲ, ଉପହାର ବା ଅନ୍ୟ ଛୋଟ ଜିନିଷ ରଖିବା ପାଇଁ ଏହା ବିଶେଷ ଆଦର ପାଇଲା। ଏପରିକି ବିଭିନ୍ନ ରକମର ଫୁଲ ପାଇଁ ଅଲଗା ଅଲଗା କିସମର ଡବା ତିଆରି ହେଉଥିଲା। କିନ୍ତୁ ୧୮୦୦ ମସିହାଠାରୁ ୧୯୩୦ ଯାଏଁ ତାହା ପ୍ରାୟ ହଜି ଯାଇଥିଲା। ଘରେ ଘରେ ମା'ମାନେ ତାଙ୍କ ପିଲାମାନଙ୍କୁ ଶିଖାଇବା ଯୋଗୁଁ ହିଁ କେବଳ ଏହି କଳା ବଞ୍ଚି ରହିପାରିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳକୁ ଏହା ଏକ ଶସ୍ତା ସହଜ ମଜାଦାର ଖେଳ ଭାବରେ ଚଳିବାକୁ ଲାଗିଲା। ୧୭୯୭ ମସିହାରେ ପ୍ରକାଶିତ ଦୁଇଟି ବହିରୁ ଅଧିକାଂଶ ଆକୃତି ଭାଙ୍ଗିବାର ପୁରୁଣା ଧାରା ଉଦ୍ଧାର କରାଗଲା।

ଧୀରେ ଧୀରେ କାଗଜ ଭଙ୍ଗା କଳା ସାରା ପୃଥିବୀରେ ଖୁବ୍ ଲୋକପ୍ରିୟ ହୋଇପାରିଛି। ଅବଶ୍ୟ ଏବେ ଓରିଗାମୀ କେବଳ ମଜା ପାଇଁ କରାଯାଉଛି। ଆକୃତିଗୁଡିକ ପଛରେ ରହିଥିବା ସାମାଜିକ ଓ ସାଂସ୍କୃତିକ ଅର୍ଥ ସବୁ କୁଆଡେ ହଜିଗଲାଣି। ୧୯୩୦ ମସିହାର ଜାପାନର ଜଣେ ଯୁବ ଇଞ୍ଜିନିୟର *ଆକିରା ୟୋସିନାଶ୍ରୀ* କେତେଗୁଡିଏ ଜଣାଶୁଣା ଆକୃତି ନେଇ ଖେଳିଲେ ଓ ଦେଖିଲେ ଯେ ସେ ନିଜେ ମଧ୍ୟ ଅନେକଗୁଡିଏ ନୂଆ ଆକୃତି ଚିନ୍ତା କରିପାରୁଛନ୍ତି। ପୁରୁଣା ଭାଙ୍ଗ ସବୁକୁ ଅନୁଧ୍ୟାନ କରି ସେ କେତେକ ସାଧାରଣ ଧାରା ବାହାର କଲେ। ଆଜିକାଲି ଓରିଗାମୀ ବହିମାନଙ୍କରେ ଦିଆ ଯାଉଥିବା ସଙ୍କେତଗୁଡିକୁ ସେ ହିଁ ଆରମ୍ଭ କରିଥିଲେ। *ଇସାଓ ହୋଣ୍ଡା* ନାମକ ଜଣେ ଆଗ୍ରହୀ ଜାପାନୀ ନୂଆ ପୁରୁଣା ସବୁ ଓରିଗାମୀ ଧାରାଗୁଡିକୁ ଏକାଠି କରି ୧୯୪୪ ବେଳକୁ ଛପାଇବା ଆରମ୍ଭ କଲେ। ଆଜିକାଲି ଓରିଗାମୀ ଉପରେ ଶହ ଶହ ବହି ବାହାରୁଛି। ଅନେକ ସୃଜନଶୀଳ କଳାକାର ଏଥିରେ ବେଶ୍ ସମୟ ଖଟାଉଛନ୍ତି। ଏ ସବୁକୁ ନେଇ ଅନେକ ପତ୍ରପତ୍ରିକା ବାହାରୁଛି ଓ କେତେ ପ୍ରଦର୍ଶନୀମାନ କରାଯାଉଛି।

ପିଲାଙ୍କ ପାଠପଢା ପାଇଁ ମଧ୍ୟ ଓରିଗାମୀ ବ୍ୟବହାର କରାଯାଉଛି। ହାତ, ଆଖି ଓ ମସ୍ତିଷ୍କ ଭିତରେ ସମନ୍ୱୟ ଆଣିବା ପାଇଁ ଏବଂ ଗଣିତ ବା ଜ୍ୟାମିତି ପଢାଇବା ପାଇଁ ଏହା ଏକ ମାଧ୍ୟମ ହୋଇ ପାରୁଛି। ହାତରେ କିଛି ଅସୁବିଧା ଥିଲେ ଓରିଗାମୀ ଆକୃତି ତିଆରି କରି ଏହାକୁ ଦୂର କରିବା ପାଇଁ ଚେଷ୍ଟା କରାଯାଉଛି। ସୌନ୍ଦର୍ଯ୍ୟବୋଧଠାରୁ ଆରମ୍ଭ କରି ଭାସ୍କର୍ଯ୍ୟ ଓ କାରିଗରୀ ବିଦ୍ୟାର ଶିକ୍ଷା ପାଇଁ ମଧ୍ୟ ଏହା କାମରେ ଲାଗିପାରୁଛି। ଏହାର ଅଭ୍ୟାସ ଫଳରେ ଇନ୍ଦ୍ରିୟ ଓ ଅଙ୍ଗ ଭିତରେ ସମନ୍ୱୟର ବିକାଶ ହେବା ସହିତ ହାତର ସୂକ୍ଷ୍ମ କାର୍ଯ୍ୟଦକ୍ଷତା ଓ ମୁଣ୍ଡର କଳ୍ପନା ଶକ୍ତି ବଢି ପାରିଥାଏ।

ଓରିଗାମୀ ଧାରାରେ କାଗଜକୁ ନଚିରି, ନକାଟି, ଅଠା ନଲଗାଇ ଅନେକ ଆକୃତି ତିଆରି କରିହେବ। ଏହାର ସବୁଠାରୁ ବଡ କଥା ହେଲା, ଏହା ଏପରି ଏକ କଳା ଯାହାକୁ ଯିଏ ବି କେହି, ଯେ କୌଣସି ସମୟରେ, ଯେ କୌଣସି ଜାଗାରେ କରିପାରିବ। ଏଥିପାଇଁ ଦରକାର ଖଣ୍ଡେ କାଗଜ, ଦୁଇଟି ହାତ ଓ ଗୋଟିଏ ସୃଜନଶୀଳ ମନ। କାଗଜ ଭଙ୍ଗାର କଳାକୁ ଆୟତ୍ତ କରିବାକୁ ହେଲେ ଧୈର୍ଯ୍ୟ ଦରକାର, ଲଗାତର ଅଭ୍ୟାସ ଦରକାର। ଅନ୍ୟ ଦୃଷ୍ଟିରେ ଦେଖିଲେ ଓରିଗାମୀରେ ମନ ଲାଗିଗଲେ ତାହା ଦକ୍ଷତା ବଢାଇବା ସାଙ୍ଗେ ସାଙ୍ଗେ ଧୈର୍ଯ୍ୟ ଓ ଏକାଗ୍ରତା ବଢାଇବାରେ ସାହାଯ୍ୟ କରେ। ଏହିସବୁ ଦିଗରୁ କାଗଜ ଭଙ୍ଗା ବା ଓରିଗାମୀ ଗୋଟିଏ ମଜାଦାର ଓ ଉପାଦେୟ କାମ।

ଚେଷ୍ଟା କଲେ ଅନେକ ସମୟରେ ଅସମ୍ଭବ ଯେ ସମ୍ଭବ ହୁଏ ତା'ର ଗୋଟିଏ ଉଦାହରଣ ମିଳେ ଜାପାନର ଜଣେ ବିଖ୍ୟାତ ଓରିଗାମୀ କଳାକାର *ସବୁରୋ କାଜେଙ୍କ* କଥାରୁ। ସେହି ଅତି ଦକ୍ଷ କଳାକାର ଜଣକ ହେଉଛନ୍ତି ଜଣେ ଅନ୍ଧ ମଣିଷ! ☺

# କିପରି ଆରମ୍ଭ କରିବା

ଓରିଗାମୀର ଆକୃତି ସବୁ କରିବା ପାଇଁ ଯେ କୌଣସି ପ୍ରକାରର କାଗଜ ହେଲେ ଚଳିବ। କିନ୍ତୁ ଜାପାନୀ ଓରିଗାମୀ କାଗଜ ଏଥିପାଇଁ ସବୁଠାରୁ ଭଲ ହୋଇଥାଏ। ଯେ କୌଣସି କାଗଜ ଯାହାକି ଅତି ମୋଟା ହୋଇ ନଥିବ, ଭଲ ଭାବରେ ଭାଙ୍ଗ ଧରି ପାରୁଥିବ, ଏବଂ ଅତି ସହଜରେ ଚିରି ଯାଉନଥିବ ସେଥିରେ ଓରିଗାମୀର ନମୂନା ସବୁ କରିହେବେ। ଅନେକ ପ୍ରକାରର ଜାପାନୀ ଓରିଗାମୀ କାଗଜ ମିଳେ। ତେବେ ସାଧାରଣ ଭାବରେ ବ୍ୟବହୃତ କାଗଜର ଗୋଟିଏ ପଟ ରଙ୍ଗୀନ ଓ ଆରପଟଟି ଧଳା ହୋଇଥାଏ। କିନ୍ତୁ ଏହା ବେଶ୍ ଦାମିକା। ଅଭ୍ୟାସ ପାଇଁ କେତେ ପତ୍ରିକାର ପାଲିସ୍ କାଗଜ ଭଲ କାମ ଦେବ।

କାଗଜଟି ଭାଙ୍ଗିଲାବେଳେ ବେଶ ସାବଧାନ ହୋଇ ପରିଷ୍କାର ଭାବରେ ଭାଙ୍ଗିବା ଦରକାର। ଭାଙ୍ଗଗୁଡ଼ିକ ଜୋରରେ ଚ୍ଚିପି ହେବା ଦରକାର। ଯେତେ ଯତ୍ନର ସହିତ ଭଙ୍ଗାଯିବ, ଆକୃତିଟି ସେତେ ସୁନ୍ଦର ଭାବରେ ହେବ। ଓରିଗାମୀରେ ଜ୍ୟାମିତିକ ରେଖା ସବୁ ବେଶୀ ବ୍ୟବହାର ହୋଇଥାଏ। ଯେଉଁମାନେ ଓରିଗାମୀର ପାରମ୍ପାରିକ ନୀତିରେ ବିଶ୍ୱାସ କରନ୍ତି ସେମାନଙ୍କ ଅନୁଯାୟୀ ଓରିଗାମୀରେ କୌଣସି କଟା ଯିବା ବା ଅଠା ଲଗାଯିବା ଉଚିତ ନୁହେଁ। ଆକୃତିଟି କେବଳ କାଗଜକୁ ଭାଙ୍ଗି ଭାଙ୍ଗି କରିବା ଉଚିତ। କିନ୍ତୁ ଆଜିକାଲି କେତେକ ଆକୃତିରେ ସାମାନ୍ୟ କଟାଯାଉଛି ବା ଅଠାରେ ଯୋଡା ଯାଉଛି।

ଓରିଗାମୀ ଆରମ୍ଭ କରିବା ଆଗରୁ କେତେକ ସାଧାରଣ ନିୟମ ମାନିବା ଦରକାର:

❀ ସବୁବେଳେ ଗୋଟିଏ ଟାଣ ସମତଳ ଜାଗାରେ କାମ କରିବା ଉଚିତ।

❀ କାଗଜଟିକୁ ସଠିକ ଭାବରେ ମାପି ପରିଷ୍କାର ଭାବରେ କାଟିବ।

❀ ଭାଙ୍ଗଗୁଡ଼ିକ ସାବଧାନ ହୋଇ ପକାଇବ। ଡାହାଣ ହାତର ବୁଢା ଆଙ୍ଗୁଠି ନଖରେ ଭାଙ୍ଗଗୁଡ଼ିକ ଦାବି ଦେବ। ତେବେ ଭାଙ୍ଗଗୁଡ଼ିକ ପରିଷ୍କାର ହେବ।

❀ ଆକୃତିଟି ତିଆରି କଲା ବେଳେ ଗୋଟିଏ ପାଦ ପରେ ଆଉ ଗୋଟିଏ ପାଦ କରିବ।

❀ ଯଦି ଆକୃତିଟିର ଶେଷ ଯାଏଁ କରି ନହେଲା ତେବେ କିଛି ବ୍ୟସ୍ତ ହେବାର ନାହିଁ। କାଗଜଟିକୁ ଖୋଲିଦେଇ ଭାଙ୍ଗଗୁଡ଼ିକୁ ଭଲ କରିଦେଖ। ଲେଖା ଓ ଚିତ୍ରକୁ ଭଲରେ ଦେଖି ପୁଣି ଥରେ ମୂଳରୁ ଆରମ୍ଭ କର।

ଏହିଭଳି ସାବଧାନ ହୋଇ ତେବେ ଆସ କାଗଜକୁ ଭାଙ୍ଗି କିଛି ଆକୃତି ତିଆରି କରିବା।

## ଆୟତାକାର କାଗଜରୁ ବର୍ଗାକାର କାଗଜ

ଓରିଗାମୀର ଅଧିକାଂଶ ଆକୃତି ବର୍ଗାକାର କାଗଜରୁ ଆରମ୍ଭ କରାଯାଏ। ଏହି ବହିଟିର କାମଗୁଡ଼ିକରେ ଅନ୍ୟ କିଛି ଲେଖା ନଥିଲେ ବର୍ଗାକାର କାଗଜ ନେବାକୁ ହେବ। ଯେଉଁଠି ବର୍ଗାକାର ବଦଳରେ ଆୟତାକାର କାଗଜ ଦରକାର, ସେଠାରେ "ଆୟତାକାର କାଗଜରୁ" .... ବୋଲି ଲେଖା ଯାଇଛି।



୧. କାଗଜଟିକୁ ଏପରି ଭାଙ୍ଗ ଯେପରି ତା'ର ଉପର ଧାରଟି ବାଁ ପଟ ଧାର ସହ ପୂରା ମିଶିଯିବ।



୨. ତଳର ଅଧିକା ଅଂଶକୁ କାଟି ବା ଚିରି ବାହାର କରିଦିଅ।



୩. ତ୍ରିଭୁଜଟି ଖୋଲିଦିଅ।



୪. ଏବେ କାଗଜଟି ବର୍ଗାକାର ହୋଇଗଲା।

### ଭାଙ୍ଗିବ କିପରି (କୋଣିଆ ଭାଙ୍ଗ).

୧. କାଗଜଟି ଗୋଟିଏ ଟାଣ ସମତଳ ଜାଗାରେ କୋଣିଆ କରି ରଖ, ତଳ କୋଣଟିକୁ ଉଠାଇ ଉପର କୋଣ ସହ ମିଶାଅ।





୨. କୋଣ ଦୁଇଟିକୁ ମିଶାଇ ଗୋଟିଏ ହାତରେ ଚିପି ଧର। ଆର ହାତର ବିଶି ଆଙ୍ଗୁଠିଟି ତଳକୁ ଧାର ଯାଏଁ ଖସାଇ ଆଣ।



୩. ଧାର ଉପରେ ବିଶି ଆଙ୍ଗୁଠିଟିକୁ ଘ୍ୱପି କାଗଜର ଡାହାଣ ପଟକୁ ଖସାଅ।





୪. ତା'ପରେ ବାଁ ପଟକୁ ମଡାଇନିଅ।

## *ଅଧା କରି ଭାଙ୍ଗ*



୧. କାଗଜଟିକୁ ଟାଣ ସମତଳ ଜାଗାରେ ରଖ। ତଳ ଦୁଇଟି କୋଣକୁ ଦୁଇ ହାତରେ ଧରି ତାକୁ ଉପର ଦୁଇ କୋଣ ଯାଏଁ ଉଠାଅ।



୨. ଉପର ଧାର ଓ ତଳ ଧାର ଯେପରି ପୂରା ମିଶିଯିବ। କାଗଜଟିକୁ ଏପଟ ସେପଟ କରି ଦେଖ ଯେ କୋଣ ଦୁଇଟି ପୂରା ମିଶୁଛି।





୩. ଗୋଟିଏ ହାତରେ ଉପର ଧାରକୁ ଜୋରରେ ଚ୍ପି ଧର ଓ ଆର ହାତର ବିଶି ଆଙ୍ଗୁଠିକୁ କାଗଜର ତଳ ଆଡକୁ ଖସାଇ ଆଣ।

୪. ତଳ ଧାରରେ ଆଙ୍ଗୁଠିଟିକୁ ବାଁକୁ ଓ ଡାହାଣକୁ ମଡାଇ ଭାଙ୍ଗଟିକୁ ଚ୍ପିଦିଅ।





୫. ଭାଙ୍ଗିସାରିବା ପରେ ଦେଖ ଯେପରି ଉପର କୋଣଗୁଡିକ ଓ ଧାରଗୁଡିକ ମିଶି ରହିଥିବ।

୬. କାଗଜଟି ଅଧା ହୋଇଗଲା।

*କାଗଜ ଭାଙ୍ଗିଲା ବେଳେ କେତୋଟି କଥା ମନେରଖିବା*

- ଭାଙ୍ଗ ଦେଲା ବେଳେ ଆଙ୍ଗୁଠିଟିକୁ ଗୋଟିଏ ଥରରେ ଖସାଇ ନେବ। ରହି ରହି ଡିଆଇଁ ଡିଆଇଁ କଲେ ଭାଙ୍ଗ ଏତେ ଭଲ ପଡେନାହିଁ।
- ଭାଙ୍ଗଗୁଡିକ ଭଲ କରି ଚିପି ଦେବ।
- ପ୍ରଥମ ଅଧା କରି ଭାଙ୍ଗ ବା କୋଣିଆ ଭାଙ୍ଗଟି ଠିକ୍‌ରେ ପକାଇବା ଦରକାର। ତେଣୁ ତରତର ନହୋଇ ଧୈର୍ଯ୍ୟର ସହିତ ଧୀରେ ଧୀରେ ଭାଙ୍ଗ ପକାଇବା ଦରକାର। ★

# ସଙ୍କେତ

ବହିରେ କେତେଗୁଡିଏ ସଙ୍କେତ ବ୍ୟବହାର କରାଯାଇଛି। ସବୁ ଦେଶରେ ଏସବୁ ସଙ୍କେତ ଏକା ଅର୍ଥରେ ବ୍ୟବହାର କରାଯାଇଥାଏ। ବହିଟିର ଅନେକ ଜାଗାରେ କିଛି ଲେଖା ନଯାଇ କେବଳ ସଙ୍କେତ ବ୍ୟବହାର କରାଯାଇଛି। ସେସବୁ ଜାଗାରେ ଏହି ତାଲିକାଟି ଦେଖି ଆକୃତିଟିକୁ କରିବାକୁ ହେବ।

ଗାରରେ କାଗଜଟିକୁ ସାମନାକୁ ଭାଙ୍ଗ

ଗାରରେ କାଗଜଟିକୁ ପଛକୁ ଭାଙ୍ଗ



ସାମନାକୁ ଭାଙ୍ଗ



ପଛକୁ ଭାଙ୍ଗ



ଗାରରେ ଦାଗଟିଏ ଅଛି



କାଗଜଟିକୁ ଓଲଟାଇ ଦିଅ



ଚିତ୍ରଟି ବଡ଼ କରି ଦିଆଯାଇଛି



କୋଣଟିକୁ ତଳକୁ ଦାବିଦିଅ



କଣାରେ ଫୁଙ୍କିଦିଅ

# ସହାୟକ ଗ୍ରନ୍ଥସୂଚୀ

ଇଂରାଜୀ ଭାଷାରେ ଓରିଗାମୀରେ ଅନେକ ବହି ରହିଛି। ସେଥିରେ ସହଜ ଆକୃତିରୁ ଆରମ୍ଭ କରି ଜଟିଳ ଆକୃତି ସବୁ ବେଶ୍ ସରଳ ଭାଷାରେ ଲେଖାଯାଇଛି। ସେଭଳି କିଛି ବହିର ତାଲିକା ଏଠାରେ ଦେଉଛୁ। ଆଶା କରୁଛୁ ଏଗୁଡ଼ିକ ସାଥିମାନଙ୍କୁ ଆହୁରି ଆଗେଇ ଯିବାରେ ସାହାଯ୍ୟ କରିବ।


1. *Origami* N.E. Publishers,
   16, Motilal Mullick Lane, Calcutta 700035
2. *My book of paper folding* S. Narvekar
   Navneet Publications (India) Ltd.
   Bhabani Shankar Road, Dadar, Mumbai 400028
3. *Origami and Paper play*
   Madhuban Educational books,
   576, Masjid Road, Jangpura, New Delhi 110014
4. *Origami - A Complete Step-by-step guide*, Paul Jackson
   Hamlyn publishing group, London
5. *Origami - Techniques, Methods, materials*,
   Chancellar Press, London
6. *Origami - Japanese Paper folding*, Satoru Tanase
   Asahi Shiko Co. Ltd., Nagoya
7. *Origami* Hideaki Sakata
   Graph-Sha Ltd., Tokyo
8. *Teach yourself Origami*, Robert Harbin,
   Hodder & Stoughton, London
9. *The Joy of Origami*, Toshie Takahama
   Shufunotomo, Tokyo

# ଶିଆଳ ମୁହଁ



୧. କାଗଜଟିକୁ ଅଧାରୁ ଭାଙ୍ଗ।



୨. ---- ଗାର ଉପରେ ଧାର ଦୁଇଟିକୁ ସାମନା ଆଡକୁ ଭାଙ୍ଗ। ଧାର ଦୁଇଟି କିଛି ଛଡାରେ ରହିବା ଦରକାର।



୩. ଶିଆଳର କାନ ହୋଇଗଲା। ଏହାକୁ ଓଲଟାଇ ଦିଅ।



୪. ଚିତ୍ରଟି ବଡ କରି ଦିଆଯାଇଛି।



୫. ଶିଆଳର ଆଖି, ପାଟି ଓ ନିଶ କରିଦିଅ।



# ଟୋପି



୧. କାଗଜଟିକୁ ଅଧାରୁ ତଳକୁ ଭାଙ୍ଗ ।



୨. ----- ଗାରରେ ଉପର କୋଣ ଦୁଇଟିକୁ ବିପରୀତ ଧାର ଉପରକୁ ଭାଙ୍ଗ, ଯେପରି ତଳ ଧାର ଦୁଇଟି ଗୋଟିକ ଉପରେ ଆଉଟି ମିଶି କରି ପଡିବ ।



୩. ତ୍ରିଭୁଜ ଅଂଶର ଉପର ପରସ୍ତଟିକୁ ----- ଗାରରେ ଉପରକୁ ଭାଙ୍ଗ ।



୪. ଉପର ପରସ୍ତ କାଗଜକୁ ----- ଗାର ଉପରେ ତଳକୁ ଭାଙ୍ଗି ଦିଅ ।



୫. ତଳ ପରସ୍ତଟିକୁ ଭାଙ୍ଗି ଭିତରକୁ ପୂରାଇ ଦିଅ ।



୬. ଟୋପିଟିକୁ ମୁଣ୍ଡରେ ପିନ୍ଧ ।



# ପେନ୍‌ସିଲ ମୁଣି



୧. କାଗଜଟିକୁ ଅଧା କରି ଭାଙ୍ଗ।



୨. ଟୋପି (ପୃ ୧୪) ଭଳି ତଳ କୋଣ ଦୁଇଟିକୁ ବିପରୀତ ଧାର ଉପରକୁ ଭାଙ୍ଗ ଯେପରି ଗୋଟିକ ଉପରେ ଆରଟି ରହିବ ଓ ଦୁହିଁଙ୍କର ଉପର ଧାର ମିଶିଯିବ।



୩. ଉପର କୋଣର ସାମନା ପରସ୍ତଟିକୁ ----- ଗାର ଉପରେ ଅଧା କରି ତଳକୁ ଭାଙ୍ଗ।



୪. ତାକୁ ପୁଣିଥରେ ଅଧା କରି ଭାଙ୍ଗ।



୫. ଦୁଇ ଧାର ମିଶୁଥିବା ଜାଗାରେ ତାକୁ ପୁଣି ଥରେ ଭାଙ୍ଗି ତଳ କାଗଜ ଉପରକୁ ଚଢ଼ାଇ ଦିଅ



୬. ତୁମର ପେନ୍‌ସିଲ ଡବା ମୁଣିଟି ହୋଇଗଲା।



# କାନ୍ଥ ଫୁଲଦାନୀ



୧. କାଗଜଟିକୁ ମଝିରୁ ଉପରକୁ ଭାଙ୍ଗ।



୨. ପୁଣି ଥରେ କଡରୁ ଅଧା କରି ଭାଙ୍ଗ।



୩. ପୁରା କାଗଜଟିକୁ (୪ଟି ଯାକ ପରସ୍ତ) ଅଧାରୁ ଭାଙ୍ଗି ଖୋଲିଦିଅ ଯେପରି ଦାଗ ରହିଯିବ।



୪. ଉପର ୩ଟି ପରସ୍ତକୁ ଆସ୍ତେ କରି ଭିତରକୁ ପୂରାଇ ଭାଙ୍ଗିଦିଅ।





୫. କାନ୍ଥରେ ଟାଙ୍ଗିବା ପାଇଁ ଫୁଲଦାନିଟି ହୋଇଗଲା। କାଗଜର ଫୁଲ ତିଆରି କରି ତା' ଭିତରେ ପୂରାଇ କାନ୍ଥରେ ଲଗାଇ ଦିଅ।



# କୁକୁର



୧. କାଗଜଟିକୁ କୋଣରୁ ତଳକୁ ଭାଙ୍ଗିଦିଅ।



୨. ଗାର ଉପରେ କୋଣ ଦୁଇଟିକୁ ତଳକୁ ଭାଙ୍ଗ। ଦେଖିବ ଯେପରି ଭାଙ୍ଗ ଦୁଇଟି ମଝିରେ କିଛି ଫାଙ୍କ ରହିବ।




୩. କାଗଜର ଉପର ପରସ୍ତରେ ---- ୧ମ ଗାର ଉପରେ ଉପରକୁ ଓ --- ୨ୟ ଗାର ଉପରେ ତଳକୁ ଭାଙ୍ଗ।



୪. କୁକୁରର ମୁହଁ ହୋଇଗଲା। ଏହାର ଆଖି ଓ ନାକ ଆଙ୍କିଦିଅ।







୫. ଆଉ ଖଣ୍ଡିଏ କାଗଜ ନେଇ ତାକୁ ଅଧା କରି ଭାଙ୍ଗ।

୬. ---- ଗାର ଉପରେ ପଛକୁ ଭାଙ୍ଗ।

୭. କୁକୁରର ଦେହ ହୋଇଗଲା। ଏହାର ଉପର କୋଣଟି ମୁଣ୍ଡର କାଗଜ ପରସ୍ତ ଭିତରେ ପୂରାଇ ଦିଅ। ତୁମର କୁକୁରଟି ହୋଇଗଲା। ତଳ ପଟର କାଗଜର ଦୁଇ ପରସ୍ତକୁ ଟିକିଏ ମେଲାଇ ଦେଲେ କୁକୁରଟି ଠିଆ ହୋଇ ରହିବ।





# କଣ୍ଢେଇ



୧. କାଗଜଟିକୁ ଅଧାରୁ ଭାଙ୍ଗି ଖୋଲି ଦିଅ, ଯେପରି ମଝିରେ ଭାଙ୍ଗର ଦାଗ ରହିଯିବ।



୨. ବାଁ ଓ ଡାହାଣ ପଟର ତଳ ଧାର ଦୁଇଟିକୁ ଭିତରକୁ ଭାଙ୍ଗ, ଯେପରି ସେ ଧାର ଦୁଇଟି ମଝି ଦାଗ ଉପରେ ପଡିବ।



୩. ଉପର ଧାର ଦୁଇଟିରୁ ଅଳ୍ପ ଛାଡି ----- ଗାର ଉପରେ ପଛ ଆଡକୁ ଭାଙ୍ଗି ଦିଅ।



୪. ଉପର କୋଣଟିକୁ ପଛକୁ ଓ ମଝିର କୋଣ ଦୁଇଟିକୁ ସାମନାକୁ ଭାଙ୍ଗ।



୫. ତଳ ----- ଗାରରେ ପଛ ପଟକୁ ଭାଙ୍ଗି ଦିଅ।



୬. କଣ୍ଢେଇର ମୁହଁ ଆଙ୍କି ଦିଅ।



# ତିମି



୧. କାଗଜଟିକୁ ମଝିରୁ ଭାଙ୍ଗି ଖୋଲିଦିଅ।



୨. ---- ଗାର ଉପରେ ଭାଙ୍ଗ, ଯେପରି ଡାହାଣ ପଟର ଧାର ଦୁଇଟି ମଝି ଦାଗରେ ମିଶିବ।



୩. 'କ' କୋଣଟିକୁ ----- ଗାର ଉପରେ ଡାହାଣ ପଟକୁ ଭାଙ୍ଗ।



୪. କାଗଜଟିକୁ ଅଧା କରି ଭାଙ୍ଗି ଦିଅ, ଯେପରି ତଳ କୋଣ ଉପର କୋଣ ସହ ମିଶିବ।



୫. ଉପର କୋଣ ଦୁଇଟିକୁ -·-·- ଗାର ଉପରେ ଭିତରକୁ ଭାଙ୍ଗିଦିଅ।



୬. ଲାଞ୍ଜଟିକୁ -·-·- ଗାର ଉପରେ ପଛକୁ ଭାଙ୍ଗିଦିଅ। ତିମି ହୋଇଗଲା ।



# ଡଙ୍ଗା



୧. କାଗଜଟିକୁ ମଝିରୁ ଭାଙ୍ଗି ଖୋଲିଦିଅ ।



୨. ଉପର ଓ ତଳ ଧାରକୁ ମଝି ଯାଏଁ ଭାଙ୍ଗ ।



୩. ----- ଗାର ଉପରେ ମଝିରୁ ଭାଙ୍ଗିଦିଅ ।



୪. ----- ଗାର ଉପରେ ତଳ କୋଣ ଦୁଇଟିକୁ ସାମନାକୁ ଭାଙ୍ଗିଦିଅ ।



୫. ଗାର ଉପରେ. ଉପର ପରସ୍ତଟି ସାମନାକୁ ଓ ତଳ ପରସ୍ତଟି ପଛପଟକୁ ଭାଙ୍ଗିଦିଅ ।



୬. ଆଗଥର ଭଳି ଆଉ ଥରେ ଉପର ପରସ୍ତ ସାମନାକୁ ଓ ତଳ ପରସ୍ତ ପଛପଟକୁ ଭଙ୍ଗ ।



୭. ଡଙ୍ଗାଟିକୁ ଖୋଲିଦିଅ ।



# ଚଢେଇ



୧. କାଗଜଟିକୁ ଅଧା କରି ଭାଙ୍ଗଦିଅ।



୨. ଡାହାଣ ପଟ କୋଣଟିକୁ ----- ଗାର ଉପରେ ତଳକୁ ଭାଙ୍ଗିଦିଅ। ତା'ପରେ ଖୋଲିଦିଅ।



୩. କୋଣଟିକୁ ଭିତରକୁ ଦାବି ପୂରାଇଦିଅ। ଏହା ଚଢେଇର ଥଣ୍ଟ ହୋଇଗଲା।



୪. ଉପର ପରସ୍ତର ତଳ କୋଣଟିକୁ ----- ଗାର ଉପରେ ଭାଙ୍ଗ।



୫. ଆରପଟେ ମଧ୍ୟ ସେହିଭଳି ଭାଙ୍ଗ। କାଗଜର ଦୁଇ ପରସ୍ତକୁ ଅଳ୍ପ ଖୋଲିଦିଅ।



୬. ଚଢେଇଟି ଠିଆ ହୋଇ ତଳୁ ଖୁମ୍ପି ଖାଇଲା ଭଳି ମନେ ହେବ।



# ଆଉ ଗୋଟିଏ ଚଢେଇ...



୧. କାଗଜଟିକୁ ଅଧା କରି ଭାଙ୍ଗିଦିଅ।



୨.କୋଣ ଦୁଇଟିକୁ ତଳକୁ ଭାଙ୍ଗିଦିଅ।



୩. କାଗଜଟି --- ଗାର ଉପରେ ଅଧା କରି ପଛକୁ ଭାଙ୍ଗିଦିଅ ଓ ବୁଲାଇଦିଅ।



୪. ଉପର ପରସ୍ତ କାଗଜକୁ ---- ଗାର ଉପରେ ଭାଙ୍ଗ। ସେହିଭଳି ତଳ ପରସ୍ତ କାଗଜକୁ ମଧ୍ୟ ପଛକୁ ଭାଙ୍ଗିଦିଅ।



୫. ତଳର କୋଣ ଦୁଇଟିକୁ ସେହିଭଳି ଆଗକୁ ଓ ପଛକୁ ଭାଙ୍ଗିଦିଅ। ଉପରର ବାଁ ପଟ କୋଣକୁ ଭାଙ୍ଗି ଆଗ ଚଢେଇ ଭଳି ଅଣ୍ଟ କର।



୬. ଚଢେଇଟି ହୋଇଗଲା।



# ଝିଣ୍ଟିକା





୧. କାଗଜଟିକୁ ----- ଗାର ଉପରେ ଭାଙ୍ଗି ଦୁଇ ଭାଗ କର ।

୨. ----- ଗାରରେ ଉପରକୁ ଭାଙ୍ଗ, ଯେପରି କୋଣଟି ଉପରକୁ ଉଠି ରହିବ । କାଗଜଟିକୁ ଓଲଟାଇ ଦେଇ ଆରପଟେ ମଧ୍ୟ ସେହିପରି ଉପରକୁ ଭାଙ୍ଗ ।





୩. 'କ' କୋଣଟିକୁ -·-·- ଗାର ଉପରେ ତଳକୁ ଭାଙ୍ଗି, ଖୋଲିଦିଅ ।

୪. କୋଣଟି ଉପରେ ଆଙ୍ଗୁଠି ରଖି ତଳକୁ ଦାବି ଦିଅ, ଯେପରି ତାହା ଦୁଇ ପରସ୍ତ କାଗଜ ଭିତରକୁ ପଶିଯିବ । ଏହା ଝିଣ୍ଟିକାର ଥଣ୍ଟ ହୋଇଗଲା



୫. ତୁମର ଝିଣ୍ଟିକାଟି ହୋଇଗଲା ।



# ବତକ



୧. କାଗଜଟିକୁ ଅଧା କରି ଭାଙ୍ଗି ଖୋଲିଦିଅ।



୨. ଧାର ଦୁଇଟିକୁ ----- ଗାର ଉପରେ ମଝି ଦାଗ ଯାଏଁ ଭାଙ୍ଗ।



୩. କାଗଜଟିକୁ ଓଲଟାଇ ଦିଅ।



୪. ଧାର ଦୁଇଟିକୁ ----- ଗାର ଉପରେ ମଝି ଦାଗ ଯାଏଁ ଭାଙ୍ଗ।



୫. କାଗଜଟିକୁ ଅଧା କରି ଭାଙ୍ଗ, ଯେପରି ଉପରର କୋଣଟି ତଳ କୋଣ ସହ ମିଶିଯିବ।



୬. ଉପର ପରସ୍ତର କୋଣଟିକୁ ----- ଗାର ଉପରେ ଉପରକୁ ଭାଙ୍ଗ।



୭. କାଗଜଟିକୁ ----- ଗାରରେ ଅଧା କରି ପଛକୁ ଭାଙ୍ଗିଦିଅ।



୮. କାଗଜଟି ବୁଲାଇଦିଅ।



୯. ଉପରର କୋଣଟିକୁ ଅଳ୍ପ ଉଠାଇ ଚୁପିଦିଅ। ଏହା ବତକର ଅଣ୍ଟ ହୋଇଗଲା।



୧୦. ଉପର ପରସ୍ତଟି ଖୋଲି ଉପରକୁ ଉଠାଇଦିଅ। ଏହା ବତକର ବେକ ହୋଇଗଲା।



୧୧. ବତକଟି ହୋଇଗଲା। ତଳ ପରସ୍ତକୁ ଟିକିଏ ଖୋଲିଦେଲେ ବତକଟି ଠିଆ ହୋଇ ରହିବ।



# ଘର



୧. କାଗଜଟିକୁ ମଝିରୁ ଭାଙ୍ଗି ଖୋଲିଦିଅ।



୨. ଉପରୁ ତଳକୁ ମଝିରୁ ଭାଙ୍ଗ।



୩. ଦୁଇ ଧାରକୁ ମଝିକୁ ଭାଙ୍ଗି ଖୋଲିଦିଅ।



୪. ଉପର କୋଣ ଦୁଇଟିକୁ ସାମନାକୁ ଭାଙ୍ଗି ଖୋଲିଦିଅ, ଯେପରି ଦାଗ ରହିଯିବ।



୫. ତାହା ଏହିପରି ଦେଖାଯିବ



୬. ତଳ ପରସ୍ତକୁ ଚିପି ଧରି କେବଳ ଉପର ପରସ୍ତ କାଗଜର ବାମ ଧାରକୁ ମଝି ଦାଗ ଉପରକୁ ଭାଙ୍ଗ। ଉପର କୋଣଟିକୁ ତଳକୁ ଚିପି ଦିଅ। ଡାହାଣ ପଟେ ମଧ୍ୟ ସେହିଭଳି କର।



୭. ଘରର କବାଟ ଝରକା ଆଙ୍କି ଦିଅ।



# ପିଆନୋ, ସୋଫା






୧. ଗୋଟିଏ କାଗଜରେ ଘର (ପୃ ୨୬)ଟିଏ ତିଆରି କର।

୨. ----- ଗାର ୧ ରେ ଉପରକୁ ଓ - - - ଗାର ୨ ରେ ତଳକୁ ଭାଙ୍ଗ। ତଳ ଭାଙ୍ଗଟିକୁ ଅଳ୍ପ ଉପରକୁ ଉଠାଇ ଦିଅ। ଉଭୟ ଭାଙ୍ଗ ଜାଗାରେ କାଗଜକୁ ୯୦° କୋଣ କରି (  ) ଖୋଲ।





୩. କଡ ଦୁଇଟିକୁ ସାମନାକୁ ଭାଙ୍ଗି ଦାବିଦିଅ। ତୁମର ପିଆନୋ ହୋଇଗଲା।





୪. ପିଆନୋର ତଳ ପରସ୍ତ କାଗଜରେ ----- ଗାରରେ ଉପରକୁ ଭାଙ୍ଗି ଦିଅ। ସୋଫା ହୋଇଗଲା।



# ମୁକୁଟ



୧. କାଗଜଟିଏ ନେଇ ଘର (ପୃ ୨୬)ଟିଏ ତିଆରି କର। ---- ଗାର ଉପରେ ଦୁଇ ଧାରକୁ ପଛକୁ ଭାଙ୍ଗିଦିଅ।



୨. ଉପର ପରସ୍ତର ତଳ କୋଣ ଦୁଇଟିକୁ ମଝି ଯାଏଁ ଭାଙ୍ଗ।



୩. ଉପର ପରସ୍ତର ତଳକୁ ଏବେ ତିଆରି ହୋଇଥିବା କୋଣକୁ ଉପର ଧାର ଯାଏଁ ଭାଙ୍ଗ। ଆରପଟେ ମଧ୍ୟ ପାଦ ୨ ଓ ୩ ଭଳି ଭାଙ୍ଗ।



୪. ତଳ ମୁଣିଟିକୁ ଖୋଲିଦିଅ।



୫. ଖୋଲିଲାବେଳେ ଉପର ଧାରରେ ତଳକୁ ଦାବିଦିଅ।



୬. ମୁକୁଟଟି ହୋଇଗଲା।



# ଛୋଟ ଟେବୁଲ



୧. କାଗଜଟିକୁ ତଳ-ଉପର, ବାଁ-ଡାହାଣ ବାଗରେ ଭାଙ୍ଗି ଖୋଲିଦିଅ। ଦୁଇ ଦାଗର ଛକଟି କାଗଜର ମଝି ବିନ୍ଦୁ ହେବ।



୨. ତଳ ଓ ଉପର କୋଣ ଦୁଇଟିକୁ ମଝି ବିନ୍ଦୁ ଯାଏଁ ଭାଙ୍ଗ।



୩. ଏହାକୁ ଓଲଟାଇ ଦିଅ।



୪. ଦୁଇ କୋଣକୁ ମଝି ଯାଏଁ ଭାଙ୍ଗ।



୫. ଚାରୋଟି ଯାକ କୋଣକୁ ମଝିକୁ ଭାଙ୍ଗି, ଭାଙ୍ଗଗୁଡିକୁ ଭଲ କରି ଚାପିଦିଅ।



୬. ଚାରୋଟିଯାକ ତ୍ରିଭୁଜକୁ ୯୦° ଖୋଲିଦିଅ।



୭. ଟେବୁଲଟି ଠିଆ ହୋଇ ରହିବ। ☺

# ଦିନରାତି





୧. କାଗଜଟିକୁ ଉପର-ତଳ ଭାଙ୍ଗି ଦୁଇ ଭାଗ କର ଓ ଖୋଲିଦିଅ।

୨. ପୁଣି ଥରେ କଡୁଆ ଭାଙ୍ଗି ଖୋଲିଦିଅ। ମଝିବିନ୍ଦୁଟି ମିଳିଯିବ।







୩. ଚାରୋଟି ଯାକ କୋଣକୁ ମଝିବିନ୍ଦୁ ଯାଏଁ ଭାଙ୍ଗ।

୪. ଓଲଟାଇ ଦିଅ।

୫. ଚାରୋଟି ଯାକ କୋଣକୁ ମଝିକୁ ଭାଙ୍ଗ।





୬. କାଗଜଟିକୁ ଉପରୁ ତଳ ଯାଏଁ ମଝିରୁ ଭାଙ୍ଗି ଖୋଲିଦିଅ।

୭. ଠିକ୍ ସେହିପରି କଡୁଆ ଭାଙ୍ଗି ଖୋଲିଦିଅ। କାଗଜଟିକୁ ଓଲଟାଇ ଦିଅ।



୮. ଏହିପରି ଦେଖାଯିବ।



୯. ମୁଣି ଗୁରୋଟି ଭିତରେ ଆଙ୍ଗୁଠି ପୂରାଇ ଏହିପରି ଧର। ଉପର ଆଙ୍ଗୁଠି ଦୁଇଟି ତଳ-ଉପର କଲେ ଦିନରାତିଟି ଖୋଲିବ ଓ ବନ୍ଦ ହେବ। ☺

## ବିଲେଇ





୧. ଦିନରାତିଟିଏ ତିଆରି କର।





୨. ମଝିରୁ ପଛକୁ ଭାଙ୍ଗିଦିଅ।



୩. ତଳ ମୁଣି ଦୁଇଟିକୁ ବନ୍ଦ କରି ଧର ଓ ଉପର ମୁଣି ଦୁଇଟିରେ ଆଙ୍ଗୁଠି ପୂରାଅ।



୪. ଉପର ଆଙ୍ଗୁଠି ଦୁଇଟିକୁ ତଳ ଉପର କଲେ ବିଲେଇଟି କଥା କହିବ। ☺

# କଥା କୁହା ମଣିଷ



୧. ଗୋଟିଏ କାଗଜରେ ଦିନରାତି (ପୃ ୩୦)ଟିଏ କର। ଉପର ପରସ୍ତର ତଳ ତ୍ରିକୋଣିଆଟିକୁ ---- ଗାର ଉପରେ ଭାଙ୍ଗ।



୨. ସେହିଭଳି ଉପର ତ୍ରିକୋଣିଆଟିକୁ ମଧ୍ୟ ----- ଗାର ଉପରେ ଭାଙ୍ଗ।



୩. ମଝିରୁ ଭାଙ୍ଗି ଭଲ କରି ଚିପିଦିଅ ଓ ଖୋଲିଦିଅ।



୪. ଉପର ଓ ତଳର ମୁଣି ଭିତରେ ଆଙ୍ଗୁଠି ପୂରାଇ ଖୋଲିଦିଅ। କଡରେ ଥିବା ତ୍ରିକୋଣିଆ ଦୁଇଟି ଆପେ ଆପେ ଅଧାରୁ ଭାଙ୍ଗିଯିବ।



୫. ଉପର ଓ ତଳ ଅଧାକରେ ଆଖି ଓ ପାଟି ଆଙ୍କିଦିଅ। ଦୁଇ ପଟକୁ ବାହାରିଥିବା ଅଂଶଟି ମଣିଷର କାନ ହୋଇଯିବ। ଏହାକୁ ଧରି ପାଖକୁ ଓ ଦୂରକୁ ନେଲେ ମଣିଷଟି କଥା କହିଲା ଭଳି ଲାଗିବ। ☺

# ବଲ୍



୧. ଗୋଟିଏ କାଗଜରେ ଦିନରାତି (ପୃ ୩୦)ଟିଏ କର। ଏହାର କୋଣ ଚାରୋଟିକୁ ମଝିକୁ ଭାଙ୍ଗିଦିଅ।



୨. ଏହାକୁ ଓଲଟାଇ ଦିଅ।



୩. ଚାରୋଟି ଯାକ ତ୍ରିଭୁଜକୁ ବାହାରକୁ ଖୋଲିଦିଅ।



୪. ଚାରି କୋଣରେ ଥିବା ମୁଣ୍ଡିରେ ଆଙ୍ଗୁଠି ପୂରାଇ ତ୍ରିଭୁଜ ଚାରୋଟିକୁ ପଛକୁ କରିଦିଅ ଓ ତଳକୁ ଚାପିଦିଅ।



୫. ତଳପଟେ ତ୍ରିଭୁଜ ଚାରୋଟିକୁ ଏକାଠି କରି ଧର।





୬. ଏହିପରି ଦୁଇଟି ତିଆରି କର। ଗୋଟିକର ତ୍ରିଭୁଜ ଚାରୋଟି ଅଳ୍ପ ଖୋଲା କରି ଆରଟିର ତ୍ରିଭୁଜ ଚାରୋଟି ତା' ଭିତରେ ପୂରାଇ ଦିଅ। ତୁମର ବଲ୍‌ଟି ହୋଇଗଲା। ☺

# ଜାପାନୀ ବୀରର ଟୋପି



୧. କାଗଜଟିର କୋଣରୁ କୋଣ ଭାଙ୍ଗି ଖୋଲିଦିଅ ।



୨. କାଗଜଟି ଅଧା କରି ଭାଙ୍ଗ ।



୩. ଉପରର କୋଣ ଦୁଇଟିକୁ ତଳ କୋଣ ଯାଏଁ ଭାଙ୍ଗ ।



୪. ଉପର ପରସ୍ତର ତଳ କୋଣ ଦୁଇଟିକୁ ଉପର କୋଣ ଯାଏଁ ଭାଙ୍ଗ ।



୫. ଉପର ପରସ୍ତର କୋଣ ଦୁଇଟିକୁ ----- ଗାର ଉପରେ ବାହାରକୁ ଭାଙ୍ଗ ।



୬. ଉପର ପରସ୍ତରେ ---- ଗାରରେ ଅଧାରୁ ଉପରକୁ ଭାଙ୍ଗ ।



୭. ପୁଣିଥରେ ----- ଗାରରେ ଉପରକୁ ଭାଙ୍ଗ ।



୮. ତଳ ପରସ୍ତର ତ୍ରିଭୁଜଟିକୁ ----- ଗାରରେ ପଛକୁ ଭାଙ୍ଗି ଭଲ କରି ଦାବିଦିଅ ।



୯. ଜାପାନୀ ବୀରର ଟୋପି ହୋଇଗଲା । ☺

# ଡବା





୧. କାଗଜଟି ଅଧା କରି ଭାଙ୍ଗ ଓ ଖୋଲିଦିଅ।

୨.କଡ ଦୁଇଟିକୁ ମଝିକୁ ଭାଙ୍ଗ।





୩. ଉପର ପରସ୍ତର ଦୁଇ ଫାଳ
---- ଗାର ଉପରେ ଭାଙ୍ଗିଦିଅ।

୪. ଭାଙ୍ଗ ଦୁଇଟିକୁ ଖୋଲିଦିଅ।





୫. ତୃତୀୟ ପାଦରେ ଯେଉଁ ନୂଆ ଦାଗ ହେଲା, କୋଣ ଚାରୋଟି ଯାକକୁ ସେଇ ଯାଏଁ ଭାଙ୍ଗ।

୬. ----- ଗାରରେ ସାମନାକୁ ଭାଙ୍ଗିଦିଅ। ଭାଙ୍ଗଗୁଡିକୁ ଭଲ କରି ଚିପି ଦିଅ ଓ ଖୋଲିଦିଅ।



୭. ତୃତୀୟ ପାଦରେ ମଝି ଦାଗ ପାଖରେ ହୋଇଥିବା ଭାଙ୍ଗ ତଳକୁ କୋଣ ଚାରୋଟି ପୂରାଇଦିଅ।



୮. ମଝିରେ ଥିବା ମୁଣିର ଦୁଇ ଧାର ଧରି ଖୋଲିଦିଅ।



୯. ତାହା ଏହିପରି ଖୋଲିବ।



୧୦. କୋଣଗୁଡିକୁ ଭଲ କରି ଚାପିଦିଅ।



୧୧. ଡବା ହୋଇଗଲା। ଏହା ହେଉଛି ମୂଳ ଡବା। ଏଥିରୁ ଅଉ କେତେ ପ୍ରକାରର ଡବା କରିହେବ।



# ଖୋଲୁଆ ଡବା...





୧. ମୂଳ ଡବା ଭଳି କାଗଜକୁ ମଝିରୁ ଭାଙ୍ଗି ଖୋଲିଦିଅ। ବାଁ ପଟ ଧାରକୁ ଡାହାଣ ଆଡକୁ ଭାଙ୍ଗ, ଯେପରି ତାହା ମଝି ଭାଙ୍ଗକୁ ଟପି ରହିବ।

୨. ଉପର ପରସ୍ତର ଧାରକୁ ---- ଗାର ଉପରେ ବାଁ ଆଡକୁ ଭାଙ୍ଗ।





୩. ଡାହାଣ ଧାରକୁ ବାଁ ଆଡକୁ ଭାଙ୍ଗ, ଯେପରି ତାହା ପାଦ ୨ରେ ଭଙ୍ଗା ଯାଇଥିବା ଧାର ସହ ମିଶିଯିବ।

୪. ନୂଆ ଭାଙ୍ଗଟିର ଧାରକୁ ---- ଗାର ଉପରେ ଡାହାଣ ଆଡକୁ ଭାଙ୍ଗ।





୫. ମୂଳ ଡବା ଭଳି କୋଣଗୁଡିକ ତଳକୁ ପୂରାଇ ଡବାଟି ଖୋଲିଦିଅ।

୬. ଖୋଲୁଆ ଡବାଟି ହୋଇଗଲା।



## ବେଶି ଗହୀରର ଡବା...



୧. ଗୋଟିଏ ଆୟତାକାର କାଗଜ ନେଇ ତାକୁ ମଝିରୁ ଭାଙ୍ଗ। ଖୋଲିଦିଅ।



୨. କଡ ଦୁଇଟିକୁ ମଝି ଦାଗ ଯାଏଁ ଭାଙ୍ଗ।



୩. ମୂଳ ଡବା ଭଳି ମଝି ଧାର ଓ କୋଣଗୁଡିକ ଭାଙ୍ଗ।



୪. ଖୋଲିଦେଲେ ଅଧିକ ଗହୀରର ଡବାଟିଏ ମିଳିଯିବ।



## ଅଳ୍ପ ଗହୀରର ଡବା...







୧. କାଗଜର ଦୁଇ କଡକୁ ---- ଗାର ଉପରେ ଭାଙ୍ଗ, ଯେପରି ଧାର ଦୁଇଟି ମଝି ଦାଗଠାରୁ ଅଳ୍ପ ଛାଡି ରହିବ। ୨. ମୂଳ ଡବା ଭଳି କୋଣ ଭାଙ୍ଗିଦିଅ ଓ ଖୋଲିଦିଅ। ୩. ଗୋଟିଏ ଅଳ୍ପ ଗହୀରର ଡବା ମିଳିବ। ☺

## ଗୋଡବାଲା ଡବା...



୧. କାଗଜର ଦୁଇ ଧାରକୁ ମଝିଦାଗ ଯାଏଁ ଭାଙ୍ଗ। ମଝିଦାଗ ପାଖରେ ମିଶିଥିବା ଧାର ଦୁଇଟିକୁ ଦୁଇ କଡକୁ ଏପରି ଖୋଲ ଯେପରି ତାହା ବାହାରକୁ ରହିବ।



୨. ଭାଙ୍ଗ ଦୁଇଟିକୁ ପୁଣି ଥରେ ମଝିକୁ ଭାଙ୍ଗିଦିଅ।



୩. ମୂଳ ଡବା ଭଳି କୋଣଗୁଡିକୁ ଭାଙ୍ଗି ପୂରାଇଦିଅ ଓ ଡବାଟି ଖୋଲିଦିଅ।



୪. ଗୋଡବାଲା ଡବା ହୋଇଗଲା



## ଚଉଡା ପଟିବାଲା ଡବା...







୧. ଆୟତାକାର କାଗଜଟିକୁ ଅଧା କରି ଭାଙ୍ଗ। ମଝିଦାଗ ପାଖରେ ଥିବା ଧାର ଦୁଇଟିକୁ ଦୁଇ କଡକୁ ଭାଙ୍ଗିଦିଅ। ୨. ମୂଳ ଡବା ଭଳି କୋଣଗୁଡିକୁ ଭାଙ୍ଗି ପୂରାଇଦିଅ ଓ ଡବାଟିକୁ ଖୋଲିଦିଅ। ୩. ଗୋଟିଏ ଚଉଡା ପଟିବାଲା ଡବା ହୋଇଗଲା। ☺

# ଜାପାନୀ ଡବା



୧. କାଗଜଟିକୁ ----- ଗାର ଉପରେ ଭାଙ୍ଗି ଖୋଲିଦିଅ।



୨. କୋଣ ଗୁଡ଼ିକୁ ମଝିକୁ ଭାଙ୍ଗିଦିଅ।





୩. କାଗଜଟିକୁ ଓଲଟାଇ ଦିଅ।



୪. ତଳ ଧାରଟିକୁ ମଝି ଦାଗ ଯାଏଁ ଭାଙ୍ଗ ଓ ଉପର ପରସ୍ତର ତ୍ରିଭୁଜଟିକୁ ତଳକୁ ଖୋଲିଦିଅ।



୫. ଆର ପଟେ ମଧ୍ୟ ସେହିପରି ଭାଙ୍ଗ ଓ ଓଲଟାଇ ଦିଅ।



୬. ଉପରର ଛୋଟ ତ୍ରିଭୁଜ ଦୁଇଟିକୁ ତଳ ଆଡକୁ ଓ ତଳର ତ୍ରିଭୁଜ ଦୁଇଟିକୁ ଉପର ଆଡକୁ ଭାଙ୍ଗ। ଉପର ପରସ୍ତର ତ୍ରିଭୁଜ ଦୁଇଟି ଟେକି ଦେଇ ଛୋଟ ତ୍ରିଭୁଜ ଗୁଡ଼ିକୁ ତା' ତଳକୁ ଭାଙ୍ଗିଦିଅ।



୭. ଉପର ଓ ତଳ କୋଣ ଦୁଇଟି ମଝିକୁ ଭାଙ୍ଗିଦିଅ।



୮. କାଗଜଟିକୁ ଓଲଟାଇ ଦିଅ।



୯. 'କ' ଓ 'ଖ' କୋଣ ଦୁଇଟିକୁ ---- ଗାର ଉପରେ ବାହାର ଆଡକୁ ଭାଙ୍ଗିଦିଅ। କାଗଜଟିକୁ ଘୂରାଇଦିଅ।



୧୦. ମଝିରେ ଥିବା ମୁଣି ଦୁଇଟିକୁ ବାହାର ଆଡକୁ ଖୋଲିଦିଅ। ତଳର ତ୍ରିଭୁଜ ଗୃରୋଟି ମଧ୍ୟ ଖୋଲିଯିବ।



୧୧. ଧାରଗୁଡ଼ିକୁ ଭଲ କରି ଚିପିଦିଅ।



୧୨. ଜାପାନୀ ଡବା ହୋଇଗଲା।



# ଲଫାପା



୧. ଗୋଟିଏ ଆୟତାକାର କାଗଜ ନିଅ। ଏହାକୁ ମଝିରୁ ଭାଙ୍ଗି ଖୋଲିଦିଅ।




୨. 'କ' ଓ 'ଖ' କୋଣକୁ ମଝି ଗାର ଯାଏ ଭାଙ୍ଗ।




୩. ----- ଗାର ଉପରେ ମଝିରୁ ଭାଙ୍ଗ ଯେପରି 'ପ-ଫ' ଧାର 'ମ-ର' ଧାର ସହିତ ଓ 'ଚ-ଛ' ଧାର 'ଜ-ଝ' ଧାର ସହିତ ମିଶିବ।



୪. ----- ଗାର ଉପରେ ବାଁ ପଟ ଉପର କୋଣକୁ ତଳକୁ ଓ ଡାହାଣ ପଟ ତଳ କୋଣକୁ ଉପରକୁ ଭାଙ୍ଗ।



୫. କ' ଓ ଖ' କୋଣ ଦୁଇଟିର ତଳେ ଦୁଇଟି ମୁଣି ରହିଛି। କୋଣ ଦୁଇଟିକୁ ମୁଣି ଭିତରେ ପୂରାଇ ଦିଅ।



୬. ମଝିରେ ଛୋଟିଆ କାଗଜ ଖଣ୍ଡିଏ ଅଠା ମାରି ଲଗାଇ ଦିଅ।



ଆୟତାକାର କାଗଜରେ ସାଙ୍ଗ ପାଖକୁ ଚିଠି ଲେଖି ଲେଖା ପଟଟି ଭିତରକୁ ରଖି ଏହିପରି ଭାଙ୍ଗିଦିଅ। ଆରପଟେ ଠିକଣା ଲେଖି ଟିକଟ ମାରି ପଠାଇଦିଅ।



# ରକେଟ





୧. ଆୟତାକାର କାଗଜଟିଏ ନେଇ ତା'ର ମଝିରେ ଭାଙ୍ଗ ଓ ଖୋଲିଦିଅ।

୨. ଉପର କୋଣ ଦୁଇଟିକୁ ମଝି ଯାଏ ଭାଙ୍ଗ।





୩. କୋଣ ଦୁଇଟିକୁ ----- ଗାର ଉପରେ ମଝି ଯାଏଁ ଭାଙ୍ଗ।

୪. ଓଲଟାଇ ଦିଅ।



୫. ----- ଗାର ଉପରେ ଦୁଇ ଧାରକୁ ମଝିକୁ ଭାଙ୍ଗ।



୬. ----- ଗାର ଉପରେ ପଛକୁ ଭାଙ୍ଗିଦିଅ।



୭. ବାଁ ଓ ଡାହାଣ ପଟ ପରସ୍ତ ଦୁଇଟିକୁ ଦୁଇ ପଟକୁ ୯୦° ଖୋଲିଦିଅ। ମଝି ପରସ୍ତଟି ଉପରକୁ ଠିଆ ହୋଇ ରହିବ।



୮. ଓଲଟାଇ ଦିଅ।



୯. ରକେଟଟି ହୋଇଗଲା।



୧୦. ମଝି ଖଣ୍ଡଟିକୁ ହାତରେ ଧରି ମୁନିଆ ପଟଟିକୁ ଆଗକୁ ଜୋରରେ ଛାଡ।



# ଗ୍ଲାଇଡର



୧. ଗୋଟିଏ ଆୟତାକାର କାଗଜ ନେଇ ତା'ର ମଝିରୁ ଭାଙ୍ଗ ଓ ଖୋଲିଦିଅ।



୨. ଉପରର କୋଣ ଦୁଇଟିକୁ ---- ଗାର ଉପରେ ମଝି ଯାଏଁ ଭାଙ୍ଗ।



୩. ----- ଗାର ଉପରେ ତଳକୁ ଭାଙ୍ଗ।



୪. ଉପରର କୋଣ ଦୁଇଟିକୁ ମଝିଗାରରେ ଥିବା ବିନ୍ଦୁ ଯାଏଁ ଭାଙ୍ଗ।



୫. ତଳେ ବାହାରିଥିବା ଛୋଟିଆ ତ୍ରିଭୁଜଟିକୁ ----- ଗାର ଉପରେ ଉପରକୁ ଭାଙ୍ଗ।





୬. - - - ଗାର ଉପରେ ମଝିରୁ ପଛପଟକୁ ଭାଙ୍ଗି ଦିଅ ।

୭. ଗାର ଉପରେ ଉପର ପରସ୍ତଟିକୁ ଡାହାଣକୁ ଓ ତଳ ପରସ୍ତଟିକୁ ବାଁକୁ ଭାଙ୍ଗ ।





୮. ତଳ ଓ ଉପର ପରସ୍ତର ଭଙ୍ଗା ଅଂଶକୁ ୯୦° ଖୋଲିଦିଅ ।



୯. ଗ୍ଲାଇଡରଟି ହୋଇଗଲା । ତଳୁ ଧରି ତାକୁ ଜୋରରେ ଛାଡିଦିଅ ।



# ଫୁଲ





୧. ପ୍ରାୟ ୨୦ ସେ.ମି. ଲମ୍ବା ଓ ୫ ସେ.ମି. ଚଉଡ଼ାର ଗୋଟିଏ କାଗଜ ପଟି ନିଅ।

୨. ଏହାକୁ ଲମ୍ବ ବାଗରେ ସମାନ ଦୁଇ ଭାଗ କର।





୩. ପ୍ରତି ଖଣ୍ଡକୁ ସମାନ ଚାରି ଭାଗ ଲେଖାଏଁ କର, ଯେପରି ମୋଟରେ ଆଠ ଭାଗ ହେବ। ପ୍ରତି ଦାଗରେ ପୁଣି ସାମନାକୁ ଭାଙ୍ଗି ଖୋଲିଦିଅ।

୪. ପ୍ରତି ଖଣ୍ଡକୁ କଣୁଆ ଗାର (-·-·-) ଉପରେ ପଛକୁ ଭାଙ୍ଗି ଖୋଲିଦିଅ।





୫. କୋଣିଆ ଗାରରେ (-·-·-) ସାମନାକୁ ଓ ସିଧା ଗାରରେ (- - -) ପଛକୁ ଗୋଟିକ ପରେ ଗୋଟିଏ ପରସ୍ତ କରି ଭାଙ୍ଗିଦିଅ।

୬. ଭଙ୍ଗା ସରିଲା ବେଳକୁ କାଗଜର ଦୁଇ ମୁଣ୍ଡ ମିଶିଯିବ। ଟିକିଏ ଅଠା ଲଗାଇ ଦୁଇ ମୁଣ୍ଡକୁ ଯୋଡ଼ି ଦେଲେ ଫୁଲଟି ହୋଇଯିବ।



# ନାଁ ପଟି



୧. କାଗଜଟିକୁ ଅଧାରୁ
ଭାଙ୍ଗି ଖୋଲିଦିଅ ।



୨. ତଳ କୋଣ ଦୁଇଟିକୁ ମଝି
ଗାର ଯାଏଁ ଭାଙ୍ଗିଦିଅ ।





୩. କାଗଜଟିକୁ
ଓଲଟାଇ ଦିଅ ।



୪. ଦୁଇ ଧାରକୁ ମଝି
ଯାଏଁ ଭାଙ୍ଗ ।



୫. ----- ଗାର ଉପରେ ସାମନାକୁ ଭାଙ୍ଗ ।



୬. କୋଣ ଦୁଇଟିକୁ ---- ଗାର ଉପରେ ସାମନାକୁ ଭାଙ୍ଗି ଖୋଲିଦିଅ। ଉପର ପରସ୍ତ କାଗଜକୁ ଅଳ୍ପ ଉଠାଅ ଓ ଦୁଇ କୋଣକୁ ଚିପି ଭିତରକୁ ପୂରାଇ ଦିଅ।



୭. ଉପର ପରସ୍ତ କାଗଜକୁ ----- ଗାରରେ ଭାଙ୍ଗିଦିଅ।





୮. କାଗଜଟିକୁ ଓଲଟାଇ ଦିଅ।






୯. ----- ଗାର ଉପରେ ପଛକୁ ଭାଙ୍ଗିଦିଅ ଓ ତୁମ ନାମ ଲେଖ। ଭାଙ୍ଗଟିକୁ ପକେଟରେ ପୂରାଇ ଦେଲେ ଏହା ବ୍ୟାଜ୍ ଭଳି ଝୁଲି ରହିବ। ପକେଟ ନଥିବା ଜାମାରେ ଉପର ଭାଙ୍ଗ ସିଧା କରି ସେଫ୍‌ଟି ପିନ୍ ଲଗାଇ ଦିଅ।

# ଚକ୍ରି





୧. କାଗଜଟିକୁ କୋଣ ବାଗରେ ଅଧା କରି ଭାଙ୍ଗ । ଖୋଲି ଦେଇ ଆର କୋଣ ଦୁଇଟିକୁ ମଧ୍ୟ ଅଧା କରି ଭାଙ୍ଗ ।

୨. ତଳ-ଉପର ଓ ବାଁ-ଡାହାଣ ଦିଗରେ ଅଧା କରି ଭାଙ୍ଗି ଖୋଲିଦିଅ । ଖୋଲିଦେଲେ ଦାଗ ଗ୍ରୋଟି ଏହିପରି ଦେଖାଯିବ ।





୩. ବାଁ ଓ ଡାହାଣ ଧାରକୁ ମଝି ଗାର ଯାଏଁ ଭାଙ୍ଗ ।

୪. ଉପର ଓ ତଳ ଧାରକୁ ମଧ୍ୟ ସେହିପରି ମଝି ଗାର ଯାଏଁ ଭାଙ୍ଗ ଓ ଖୋଲିଦିଅ ।





୫. ଏହିପରି ଦେଖାଯିବ । ---- ଗାର ଉପରେ ଡାହାଣ ପଟକୁ ଭାଙ୍ଗ ।

୬. ଭାଙ୍ଗଟିକୁ ଖୋଲିଦିଅ



୭. ଆଗ ଥର ଭଳି --- ଗାର ଉପରେ ବାଁ ପଟକୁ ଭାଙ୍ଗ...



୮. ... ଓ ଭାଙ୍ଗଟିକୁ ଖୋଲିଦିଅ।



୯. ମଝି ବିନ୍ଦୁ ଉପରେ ଆଙ୍ଗୁଠିରେ କାଗଜକୁ ଚ୍ୟାପି ଧରି ତଳ କୋଣ ଦୁଇଟିକୁ ବାହାରକୁ ଭିଡ। ତଳ ଧାରଟି ମଝି ଗାର ଯାଏଁ ଉଠି ଆସିବ।



୧୦. ସେହିପରି ଉପର କୋଣ ଦୁଇଟିକୁ ମଧ୍ୟ ଖୋଲିଦିଅ। ଭାଙ୍ଗଗୁଡିକୁ ଚ୍ୟାପିଦିଅ।



୧୧. ଉପରର ବାଁ ପଟ ଭାଗକୁ ଉପରକୁ ଓ ତଳର ଡାହାଣ ପଟ ଭାଗକୁ ତଳକୁ ଖୋଲିଦିଅ।



୧୨. ଚକ୍ରିଟି ହୋଇଗଲା। ଏହାର ମଝିରେ ପିନ୍‌ଟିଏ ଫୋଡି, ଗୋଟିଏ କାଠିରେ ଲଗାଇ ଧାଇଁଲେ ଚକ୍ରିଟି ବୁଲିବ। ☺

# ଯୋଡି ଡଙ୍ଗା





୧. ଗୋଟିଏ କାଗଜ ନେଇ ଚକ୍ରି (ପୃ ୫୦)ଟିଏ ତିଆରି କର। ଚକ୍ରି କରିବାବେଳେ ଏହିପରି ଗୋଟିଏ ଆକୃତି ମିଳିବ। ଏହାର ମଝିରୁ ପଛକୁ ଭାଙ୍ଗି ଦିଅ।



୨. ଯୋଡି ଡଙ୍ଗାଟିଏ ହୋଇଗଲା।

# ପାଲଟଣା ଡଙ୍ଗା



୧. ଗୋଟିଏ କାଗଜରେ ଚକ୍ରିଟିଏ କର। ଚକ୍ରିର ----- ଗାର ଉପରେ ପଛକୁ ଭାଙ୍ଗ।




୨. ଭାଙ୍ଗିବାପରେ ତାହା ଏହିପରି ଦେଖାଯିବ। ତଳ 'କ' କୋଣଟିକୁ ଉପରକୁ ଉଠାଇ 'ଖ' କୋଣ ଯାଏ ଭାଙ୍ଗ।
(ତଳ ପଟେ)



୩. ପାଲଟଣା ଡଙ୍ଗା ହୋଇଗଲା।



# କାଳି ଦୁଆତ



୧. କାଗଜଟିକୁ ---- ଗାର ଉପରେ ଉପର ତଳ, କଡରୁ କଡ ଓ କୋଣରୁ କୋଣ ଭାଙ୍ଗି ଚ୍ୟାପିଦିଅ ଓ ଖୋଲିଦିଅ।



୨. କାଗଜଟିକୁ ଉପର-ତଳ ଅଧା କରି ଭାଙ୍ଗିଦିଅ।



୩. ଦୁଇ ପରସ୍ତିଆ କାଗଜଟିକୁ ଅଧା କରି କଡୁଆ ଭାଙ୍ଗି ଦିଅ ଓ ୯୦° ଖୋଲିଦିଅ।



୪. ଉଠି ରହିଥିବା ଖଣ୍ଡର ଦୁଇ ପରସ୍ତକୁ ଖୋଲିଦିଅ।



୫. ଉପର କୋଣରୁ ତ୍ରିଭୁଜଟିକୁ ଚ୍ୟାପିଦିଅ।



୬. ତ୍ରିଭୁଜର ବାମ ଅଧାକୁ ଉଠାଇ ଡାହାଣ ଅଧା ସାଙ୍ଗରେ ମିଶାଇଦିଅ।



୭. ସେହିପରି ବାଁ ପଟର
ଅଧାକ ମଧ୍ୟ ଭାଙ୍ଗିଦିଅ।



୮. ଏହା ହେଲା ଓରିଗାମୀର ଗୋଟିଏ
ମୌଳିକ ଆକୃତି — *ଦୁଆତ ଆଧାର*।



୯. ଉପର ପରସ୍ପର ବାଁ ଓ ଡାହାଣ
କୋଣ ଦୁଇଟିକୁ ---- ଗାରରେ ଉପର
କୋଣ ଯାଏଁ ଭାଙ୍ଗ।



୧୦. ଯେପରି ତାହା ଉପର କୋଣ
ସହ ମିଶିବ। ଓଲଟାଇ ଦେଇ ଆର
ପଟେ ମଧ୍ୟ ସେହିପରି ଭାଙ୍ଗ।



୧୧. ---- ଗାର ଉପରେ
ଉପର ପରସ୍ପର କୋଣ ଦୁଇଟି
ମଝି ଯାଏଁ ଭାଙ୍ଗ।



୧୨. ପଛପଟେ ମଧ୍ୟ
ସେହିଭଳି ଭାଙ୍ଗ।



୧୩. ଉପର ପରସ୍ପର ଉପର କୋଣ ଦୁଇଟିକୁ ତଳ ଆଡକୁ ଭାଙ୍ଗ।



୧୪. ଉପରର ତ୍ରିଭୁଜ ଦୁଇଟିକୁ ----- ଗାର ଉପରେ ଭାଙ୍ଗି, ଭାଙ୍ଗ ଦୁଇଟିକୁ ଭଲ କରି ଗୁପିଦିଅ।



୧୫. ତ୍ରିଭୁଜ ଦୁଇଟିକୁ ଦୁଇ କଡରେ ଥିବା ମୁଣି ଭିତରେ ପୂରାଇ ଦିଅ।



୧୬. ତଳେ ଥିବା କଣାରେ ଜୋରରେ ଫୁଙ୍କି ଦିଅ। କାଳି ଦୁଆତଟି ତିଆରି ହୋଇଗଲା।



ଦୁଆତ ଭିତରେ ରଙ୍ଗ ପାଣି ପୂରାଇ ହୋଲି ଖେଳର ସାଙ୍ଗ ଉପରକୁ ଫିଙ୍ଗି ଖେଳି ପାରିବ। ☺

# ପ୍ରଜାପତି



୧. କାଗଜଟିଏ ନେଇ କାଳି ଦୁଆତ ପୃ (୫୩)ର ପାଦ ୧ରୁ ୮ ଯାଏଁ ଭାଙ୍ଗି ଦୁଆତ ଆଧାର ଟିଏ ତିଆରି କର।



୨. ଉପର ପରସ୍ତର ତଳ କୋଣ ଦୁଇଟିକୁ ଉପର କୋଣ ଯାଏଁ ଭାଙ୍ଗ।







୩. ଓଲଟାଇ ଦିଅ।

୪. ଉପର ପରସ୍ତର ଉପର କୋଣଟି ----- ଗାରରେ ତଳକୁ ଭାଙ୍ଗ, ଯେପରି କୋଣିଆ ଅଂଶଟି ଧାର ତଳକୁ ବାହାରି ରହିବ। ତଳ ପରସ୍ତର କାଗଜଟି ଟାଣି ହୋଇ ଦୁଇ ପଟରୁ କିଛି ଉଠିଯିବ। ଏହାକୁ ଭିତର ଆଡକୁ ଗୁପିଦିଅ। କାଗଜଟିକୁ ଓଲଟାଇ ଦିଅ।



ପ୍ରଜାପତିଟି ହୋଇଗଲା। 

# ସୃଜନିକାର ଅନ୍ୟ ପ୍ରକାଶନ

| | | |
|---|---|---|
| ୧. | କାଗଜରୁ ଆକୃତି | ୨୦.୦୦ |
| ୨. | କାଗଜ ଭଙ୍ଗାରୁ ଜ୍ୟାମିତି | ୨୦.୦୦ |
| ୩. | ଚିତ୍ରପାହାଚରେ ଚିଡ଼ିଆଖାନା | ୧୫.୦୦ |
| ୪. | ସହଜରେ ଆଙ୍କିବା ଗଛଲତା | ୧୫.୦୦ |
| ୫. | ଆକାରର ଦୁନିଆ | ୬.୦୦ |
| ୬. | ହାତ ତିଆରି ଖେଳନା | ୧୫.୦୦ |
| ୭. | ଗଣିତ କୁହୁକ | ୧୨.୦୦ |
| ୮. | ବିଜ୍ଞାନ ପହଳି | ୮.୦୦ |
| ୯. | ଆମ ମନର ଗୀତ | ୧୨.୦୦ |
| ୧୦. | ଗଛବଇଦ | ୧୫.୦୦ |
| ୧୧. | ପ୍ରାଥମିକ ଶିକ୍ଷାପଦ୍ଧତି | ୧୫.୦୦ |
| ୧୨. | ଜୀବନର ପିଲାଦିନ | ୨୦.୦୦ |
| ୧୩. | ଅଣୁରୁ ଅନ୍ତରୀକ୍ଷ | ୧୨.୦୦ |
| ୧୪. | ଚନ୍ଦ୍ର ଅଭିଯାନ | ୮.୦୦ |
| ୧୫. | ଜଳସମ୍ପଦ | ୧୫.୦୦ |
| ୧୬. | ପରିବେଶ ଦର୍ପଣ | ୨୦.୦୦ |
| ୧୭. | ଆସ ତାରା ଦେଖିବା | ୨୫.୦୦ |
| ୧୮. | କାହିଁକି ଭାଇ କାହିଁକି | ୨୫.୦୦ |
| ୧୯. | ଖେଳି ଖେଳି ଶିଖିବା | ୧୨.୦୦ |
| ୨୦. | କାଗଜର ଖେଳ | ୧୨.୦୦ |
| ୨୧. | ପତ୍ରରୁ ଚିତ୍ର | ୧୨.୦୦ |

 ଏହାଛଡ଼ା ଶିକ୍ଷା, ବିଜ୍ଞାନ ଓ ବିକାଶ ସମ୍ବନ୍ଧୀୟ କିଛି ବିଶେଷ ପ୍ରକାଶନ ମଧ୍ୟ ସୃଜନିକାଠାରୁ ମିଳିପାରିବ ।

 ଡାକ ଯୋଗେ କେବଳ ବହି ପାଇବା ପାଇଁ ପୂରା ମୂଲ୍ୟ ସହିତ ରେଜିଷ୍ଟ୍ରି ଡାକଖର୍ଚ୍ଚ କୋଡ଼ିଏ ଟଙ୍କା ଆଗୁଆ ପଠାଇବା ଦରକାର ।

# ସୃଜନିକା: କ'ଣ ଓ କାହିଁକି

ସମାଜରେ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ କରିବା, ଶିକ୍ଷା ବିଶେଷ କରି ବିଜ୍ଞାନ ଶିକ୍ଷାର ନୂଆ ଦିଗ ଖୋଜିବା, ଏହାକୁ ଅଧିକ ଆଗ୍ରହଜନକ କରିବା, ତାକୁ ନିତିଦିନିଆ ଜୀବନ ସହ ଯୋଡ଼ିବା, ବଡ଼ମାନଙ୍କୁ ବିଜ୍ଞାନର ବିଭିନ୍ନ ଦିଗ ଓ ପ୍ରଭାବ ବିଷୟରେ ସଚେତନ କରିବା ଆଦି ସୃଜନିକାର ଲକ୍ଷ। ପିଲାଦିନରୁ ହିଁ ଏହାର ବିକାଶ କରାଯିବା ଦରକାର। ଏଥିପାଇଁ ସୃଜନିକାର କାମଗୁଡ଼ିକ ପ୍ରଥମରେ ପିଲାଙ୍କ ପାଇଁ ଓ ପିଲାଙ୍କ ମାଧ୍ୟମରେ ଶିକ୍ଷକ/ଶିକ୍ଷୟିତ୍ରୀ ତଥା ଆଗ୍ରହୀ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ। ବିଜ୍ଞାନ ଶିବିର, ଶିକ୍ଷକ/କର୍ମୀ ଶିବିର, ପ୍ରକାଶନ, ଅନ୍ୟ ବହି ଓ ବିଜ୍ଞାନ ଖେଳନା ବିତରଣ ଆଦି ଏଥିରୁ କିଛି।

**ବିଜ୍ଞାନ ତରଙ୍ଗ:** ସୃଜନିକାର ଚିନ୍ତାଧାରାକୁ ବାସ୍ତବ ରୂପ ଦେବା ବିଜ୍ଞାନ ତରଙ୍ଗର ମୂଳ ଲକ୍ଷ। ସ୍କୁଲ କଲେଜ ପିଲା, ଶିକ୍ଷକ/ଶିକ୍ଷୟିତ୍ରୀ ତଥା ଜନସାଧାରଣଙ୍କ ପାଇଁ ଏହା ଏକ ସାଧନ ସାମଗ୍ରୀ। ଏହାର ସହଯୋଗୀ ହୋଇ ଆମର ଏହି ଅଭିଯାନରେ ସାମିଲ ହେବାପାଇଁ ଆମର ସାଦର ନିମନ୍ତ୍ରଣ।

ଗ୍ରାହକ ଦେୟ:

| | |
|---|---|
| ସାଧାରଣ (ବାର୍ଷିକ) | ୭୫.୦୦ |
| ଅନୁଷ୍ଠାନ (ବାର୍ଷିକ) | ୧୦୦.୦୦ |
| ସହଯୋଗୀ (ବାର୍ଷିକ) | ୧୦୦.୦୦ |
| ଆଜୀବନ | ଏକ ହଜାର ଟଙ୍କା |

ସୃଜନିକାର ଅନ୍ୟ କାର୍ଯ୍ୟକ୍ରମ ଭଳି ମଝିରେ ମଝିରେ ଓରିଗାମୀ ଶିବିରର ଆୟୋଜନ କରାଯାଉଛି। ଏଥିରେ ଯୋଗ ଦେବାପାଇଁ ଆଗ୍ରହୀ ସାଥିମାନେ ଯୋଗାଯୋଗ କରିବାକୁ ଅନୁରୋଧ।

ପନ୍ଦର ଟଙ୍କା